ଭକ୍ତ କବି ରାମଦାଶ ବିରଚିତ

# ସୋମନାଥ ବ୍ରତ ବିଧି

( ପ୍ରାଚୀନ ତାଳପତ୍ର ପୋଥିରୁ ସଂଗୃହୀତ )



ପାଠ ସଂଶୋଧକ :

**ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର**

ଛତ୍ରପୁର

ସଂଗ୍ରାହକ ଓ ସ୍ୱତ୍ୱାଧିକାରୀ :

**ଶ୍ରୀ ରାଜେନ୍ଦ୍ର ପ୍ରସାଦ ପାଣ୍ଡା**

ଉରୁସ

ପ୍ରକାଶକ :

**ଭକ୍ତ କବି ରାମଦାଶ ସ୍ମୃତି ମନ୍ଦିର**

ଉରୁସ

ପ୍ରଥମ ସଂସ୍କରଣ :

୧୭-୯-୨୦୦୦

ମୂଲ୍ୟ : ଟ ୫-୦୦

(ପୁସ୍ତକ ବିକ୍ରୟରୁ ଲବ୍ଧ ଅର୍ଥ ଦରିଦ୍ର ନାରାୟଣ ସେବା କାର୍ଯ୍ୟରେ ବିନିଯୋଗ କରାଯିବ)

# ଭୂମିକା

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଜୀବନୀ ସାହିତ୍ୟର ସଂଖ୍ୟା ଅଧିକ ନୁହେ । ଦିବାକର ଦାସ ଓ ଈଶ୍ୱର ଦାସଙ୍କ ତୁଲ୍ୟ ସ୍ୱଳ୍ପ କେତେଜଣ ଲେଖକ ଏ ଦିଗରେ ଲେଖନୀ ଚାଳନା କରିଥିବା ଦେଖାଯାଏ । କିନ୍ତୁ ଭକ୍ତକବି ରାମ ଦାଶଙ୍କ ପବିତ୍ର ପ୍ରୟାସ ହିଁ ଏ ଦିଗରେ ଅବଶ୍ୟ ସ୍ମରଣୀୟ । ଭକ୍ତକବି ରାମଦାଶ ଖ୍ରୀ: ୧୮ ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଗଞ୍ଜାମଜିଲ୍ଲାନ୍ତର୍ଗତ ପ୍ରାଚୀନ ମହୁରି ରାଜ୍ୟର ବ୍ରହ୍ମପୁର ନିକଟବର୍ତ୍ତୀ ଡୁରା ଗ୍ରାମର ଏକ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । କବିଙ୍କ ପିତା ଲଛମନ ଦାଶ, ପୁତ୍ର ମଧୁସୂଦନ ଦାଶ ଓ ଗୁରୁଥିଲେ ଗଦାଧର ଦାଶ । ତାଙ୍କରି ଉତ୍ତର ଦାୟାଦମାନଙ୍କଠାରୁ ଜଣାଯାଏ ଯେ ସେ ଥିଲେ ଯଜୁର୍ବେଦୀ ହଳୁଆ ବ୍ରାହ୍ମଣ । ତାଙ୍କର ଗୋତ୍ରଥିଲା କୃଷ୍ଣାତ୍ରେୟ ଗୋତ୍ର ଓ ପ୍ରବର ଅଙ୍ଗିରସ । ସେ କାଣ୍ୱଶାଖୈକ ବ୍ରାହ୍ମଣ ଏବଂ ରାମାନୁଜ ସମ୍ପ୍ରଦାୟଭୁକ୍ତ । କବି ବହୁ ଭକ୍ତଙ୍କ ଦୀକ୍ଷା ଗୁରୁ ଥିଲେ । ବର୍ତ୍ତମାନ ମଧ୍ୟ ତାହାଙ୍କ ଦାୟାଦମାନେ ଦୀକ୍ଷା ଗୁରୁଭାବେ ସର୍ବତ୍ର ପୂଜିତ ଓ ସମ୍ମାନିତ । ଏମାନଙ୍କର ବହୁ ଶିଷ୍ୟ ନିକଟବର୍ତ୍ତୀ ଗ୍ରାମଗୁଡ଼ିକରେ ଏବେ ସୁଦ୍ଧା ରହିଛନ୍ତି । ଡୁରା ଗ୍ରାମର ଉପକଣ୍ଠରେ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ପୁଷ୍କରିଣୀ ତଟରେ ଅବସ୍ଥିତ ପ୍ରସିଦ୍ଧ ଶ୍ରୀ ଶ୍ରୀ ଶ୍ରୀ ମୁକ୍ତେଶ୍ୱର ମନ୍ଦିର କବିଙ୍କ ସାଧନା ପୀଠ ଥିଲା । କବିଙ୍କ ଆବିର୍ଭାବ ଓ ତିରୋଧାନ ସମୟ ସଂପର୍କରେ କେଉଁଠାରେ ଉଲ୍ଲେଖ ନାହିଁ । ତଥାପି କବି ସ୍ୱୀୟ "ଦାର୍ଢ୍ୟତା ଭକ୍ତି ରସାମୃତ ଗ୍ରନ୍ଥ" ପ୍ରଥମ ଭାଗକୁ ଗଜପତି "ଶ୍ରୀବୀରକେଶରୀ ଦେବଙ୍କ ସଂପୂର୍ଣ୍ଣ ବୟାଳିଶ ଅଙ୍କ" ଓ ଦ୍ୱିତୀୟ ଭାଗ "ଶ୍ରୀଦିବ୍ୟସିଂହ ଦେବଙ୍କର ସଂପୂର୍ଣ୍ଣ ତେଇଶି ଅଙ୍କର" ରଚନା କରିଥିଲେ । ଅର୍ଥାତ (୧) ପ୍ରଥମ ଭାଗ ତୁଳମାସ ଶୁକ୍ଳପଞ୍ଚମୀ ୧୭୬୦ ମସିହା ଅକ୍ଟୋବର ୨୮ ତାରିଖ ରବିବାର ଓ ଦ୍ୱିତୀୟ ଭାଗ ଆଷାଢ଼ ମାସ ଶୁକ୍ଳପକ୍ଷ ଏକାଦଶୀ ୧୭୯୮ ମସିହା ଜୁଲାଇ ୨୪ ତାରିଖ ମଙ୍ଗଳବାର ଦିନ ଶେଷ ହୋଇଥିଲା । ଏହି ଗ୍ରନ୍ଥ ଓଡିଶାର ପୁରପଲ୍ଲୀରେ ଘରେ ଘରେ ସୁପରିଚିତ ।

ଏହି ସଂଗ୍ରାହକଙ୍କ ଦ୍ୱାରା କବିଙ୍କ ଅନ୍ୟ ଦୁଇଟି ଅପ୍ରକାଶିତ (ତାଳପତ୍ର ପୋଥି) ଗ୍ରନ୍ଥ ଶ୍ରୀ ଶିବରାତ୍ରି ମାହାତ୍ମ୍ୟ ଓ ଜନ୍ମାଷ୍ଟମୀ ମାହାତ୍ମ୍ୟ ଯଥାକ୍ରମେ ୧୯୯୮, ୧୯୯୯ ମସିହାରେ ପ୍ରକାଶିତ ହୋଇଅଛି ଶ୍ରୀ ଶିବରାତ୍ରି ମାହାତ୍ମ୍ୟ "ବ୍ୟୟ ନାମ ସମ୍ୱତ୍ସର" ଅର୍ଥାତ ୧୭୬୬ ମସିହାରେ ସମାପ୍ତ ଏବଂ ଜନ୍ମାଷ୍ଟମୀ ମାହାତ୍ମ୍ୟରେ କବି ରଚନା ସମୟ ଉଲ୍ଲେଖ କରିନାହାନ୍ତି । ଏହି ଦୁଇଟି ମାହାତ୍ମ୍ୟ ବାୟୁ ଓ ସ୍କନ୍ଦ ପୁରାଣରୁ ଉଦ୍ଧାର କରି ନବାକ୍ଷରୀ ଛନ୍ଦରେ ରଚନା କରାଯାଇଛି ।

---

୧ । ଝଙ୍କାର - ୫ମ ସଂଖ୍ୟା ଅଗଷ୍ଟ ୨୦୦୦, ପୃଷ୍ଠା ୬୧୧ ଠାରୁ ୬୨୦ ।

ସଂଗ୍ରହ ଓ ଅନୁସନ୍ଧାନ ବେଳେ କବିଙ୍କ ଅନ୍ୟ ଏକ ଅପ୍ରକାଶିତ ତାଳପତ୍ର ପୋଥି "ସୋମନାଥ ବ୍ରତ ବିଧି" ଆମ୍ଭ ଗ୍ରାମ ନିକଟସ୍ଥ ଗଉଞ୍ଜୁ ଗ୍ରାମ ନିବାସୀ ଶ୍ରୀମାନ୍ ନରସିଂହ ପାଢ଼ୀଙ୍କ ଠାରୁ ପ୍ରାପ୍ତି ହେଲି । ଏହାର ପତ୍ର ସଂଖ୍ୟା ୨୩, ପ୍ରତ୍ୟେକ ପତ୍ର ୪ ଧାଡ଼ି ବିଶିଷ୍ଟ, ପ୍ରତ୍ୟେକ ଧାଡ଼ି ୪୦ ଅକ୍ଷର ଯୁକ୍ତ । ପୋଥିର ଦୈର୍ଘ୍ୟ ଓ ପ୍ରସ୍ଥ ଯଥାକ୍ରମେ ୨୭.୬ ସେ:ମି ଓ ୩.୬ ସେ ମି । ଏହି ପୋଥିରେ ମଧ୍ୟ କବିଙ୍କ ଲେଖନ ସମୟ, ବାସସ୍ଥାନ କିମ୍ବା ତାଳପତ୍ର ପୋଥିର ନକଲକାରଙ୍କ ନାମ ଓ ସମୟ ଲେଖାଯାଇ ନାହିଁ, ମାତ୍ର ଦାର୍ଢ୍ୟତା ଭକ୍ତି ରସାମୃତ, ଶ୍ରୀ ଶିବରାତ୍ରି ମାହାତ୍ମ୍ୟ ଓ ଜନ୍ମାଷ୍ଟମୀ ମାହାତ୍ମ୍ୟ ଗ୍ରନ୍ଥରେ ବ୍ୟବହୃତ ହୋଇଥିବା ଭାଷା, ଶବ୍ଦ ଓ ବର୍ଣ୍ଣନା ଇତ୍ୟାଦି କବି ରାମ ଦାଶଙ୍କ ଅନ୍ୟାନ୍ୟ ଗ୍ରନ୍ଥର ଅନୁରୂପ, ଯଥା — ବିଶ୍ୱାସଟି ମୂଳ, ଦାର୍ଢ୍ୟ, ସାଧୁଜନ ସେବା, ସାଧୁସଙ୍ଗେ ଦିନ ମୋର ଯାଉ, ବିଶ୍ୱାସଭାବ ଓ ବିପ୍ରରାମ ଦାଶ ଇତ୍ୟାଦି (ବିଶ୍ୱାସ ଶବ୍ଦ ୫ ଥର, ଦାର୍ଢ୍ୟ ଶବ୍ଦ ୨ ଥର ଓ ନିଜର ନାମ ୨ ଥର ଲିପିବଦ୍ଧ କରିଛନ୍ତି) କବି ରାମଦାଶ ଦାର୍ଢ୍ୟତା ଭକ୍ତି ରସାମୃତ ଗ୍ରନ୍ଥର ରଚନା ପରେ ଏହି "ବ୍ରତବିଧି" ପୋଥିଟି ରଚନା କରିଥାଇ ପାରନ୍ତି ବୋଲି ମୋର ବିଶ୍ୱାସ । ଏହି ବହିଟି ଅତି କ୍ଷୁଦ୍ରକାୟ ହେଲେ ମଧ୍ୟ କବି ସରଳ ସାବଲୀଳ ଭାଷାରେ, ଚଉଦାକ୍ଷରୀ ଛନ୍ଦରେ ଭବିଷ୍ୟ ପୁରାଣରୁ ଉଦ୍ଧୃତ କରି ସୋମନାଥ ବ୍ରତବିଧି ବର୍ଣ୍ଣନା କରିଛନ୍ତି । "ଅତି ଗୋପ୍ୟ କଥା ଏହୁ ଭବିଷ୍ୟ ପୁରାଣ ମନ ବୁଦ୍ଧି ଦେଇ ଏହା ସାବଧାନେ ଶୁଣ ।

କବି ରାମଦାଶ ବୈଷ୍ଣବ ସମ୍ପ୍ରଦାୟର ଥିଲେ ମଧ୍ୟ ହରିହରଙ୍କ ଉପାସକ ଥିଲେ । କବି ଲେଖିଛନ୍ତି— "ସକଳ ଭରସା ମୋର ଶିବରାମ ଦୁଇ
ସେ ପାଦ ପଦ୍ମରେ ଏକା ଶରଣ ମାଗଇ ।"

ଏହି ଅବସରରେ ଶ୍ରୀମାନ୍ ନରସିଂହ ପାଢ଼ୀ, ଶୁଭେଚ୍ଛୁ ଗୁରୁଜନମାନଙ୍କ ଆଶୀର୍ବାଦ ଏବଂ କବିଙ୍କ ବଂଶଧର ଶ୍ରୀଯୁକ୍ତ ରବୀନ୍ଦ୍ରନାଥ ଦାଶ, ଡୁରା ଏହି ବହି ଛପାଇବାରେ ସାହାଯ୍ୟ କରିଥିବାରୁ ସେମାନଙ୍କ ନିକଟରେ ମୁଁ ବିଶେଷ କୃତଜ୍ଞ । ବିଶିଷ୍ଟ ସାହିତ୍ୟିକ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ମିଶ୍ର, ଛତ୍ରପୁର ମହୋଦୟ ତାଳପତ୍ର ପୋଥିର ଅସ୍ପଷ୍ଟ ଓ ଅଶୁଦ୍ଧ ପାଠକୁ ପରିଶୋଧିତ କରି ଶୁଦ୍ଧ ପାଠଟିକୁ ପ୍ରସ୍ତୁତ କରିଥିବାରୁ ମୁଁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି । ଯଦି ପରେ ଅନ୍ୟ ଏକ ତାଳପତ୍ର ପୋଥି ମିଳେ ଏବଂ ଏହି ପାଠରେ କୌଣସି ପରିବର୍ତ୍ତନ ଆବଶ୍ୟକ ହୁଏ ତାହା ୨ୟ ସଂସ୍କରଣରେ ପ୍ରକାଶ ପାଇବ । ସ୍ୱଳ୍ପ ସମୟ ମଧ୍ୟରେ ବହିଟିର ମୁଦ୍ରଣ କାର୍ଯ୍ୟ ସମ୍ପନ୍ନ ହୋଇଥିବାରୁ କେତେକ ଅନିଚ୍ଛାକୃତ ମୁଦ୍ରଣ ତ୍ରୁଟି ଥିଲେ ଦୟାକରି ସହୃଦୟତା ସହ କ୍ଷମା କରିବେ ।

ଡୁରା/ତା ୧୦-୯-୨୦୦୦
(ବାମନ ଜନ୍ମ)

ରାଜେନ୍ଦ୍ର ପ୍ରସାଦ ପାଣ୍ଡ
ସଂଗ୍ରାହକ

ଭକ୍ତକବି ରାମଦାସ ବିରଚିତ

# ସୋମନାଥ ବ୍ରତ ବିଧି

## ଶ୍ରୀ ଗଣେଶାୟ ନମଃ

ନମଇଁ ଶ୍ରୀ ଗଣନାଥ ଅଭୟ ପୟରେ    ସେମାନାଥ ବ୍ରତକଥା ଆଜ୍ଞା ହୋଉ ମୋରେ ।
ଶ୍ରୀ ଶାରଦା ଚରଣେ କୋଟିଏ ନମସ୍କାର    ଏ ବ୍ରତ ସମ୍ପୂର୍ଣ୍ଣ କର କଣ୍ଠେ ବସି ମୋର ।
ନମଇଁ ଶ୍ରୀ ସଦାଶିବ ଚରଣର ଗତେ    ଏ ମହାବ୍ରତର କଥା ଆଜ୍ଞା ହୋଉ ମୋତେ ।
କୈଳାସ ବୈକୁଣ୍ଠପୁରେ ଏକ ଦିନକର    ମଣିମୟ ମଣ୍ଡପରେ ବିଜୟେ ଶଙ୍କର ।
ନାନା ରତ୍ନ ପୀଠପରେ ପଦ୍ମାସନେ ବିଜେ    ସ୍ଫଟିକ କୁଣ୍ଡଳ ଯୁଗ ଶ୍ରବଣେ ବିରାଜେ ।
ମଉଳି ମଣ୍ଡିତ ଗଙ୍ଗା ପୂର୍ଣ୍ଣ ଶଶଧର    କଣ୍ଠତଟେ ବିରାଜିତ ରୁଦ୍ରାକ୍ଷର ହାର ।

ବିଭୂତିଭୂଷଣ ଅଙ୍ଗେ ଅତି ଶୋଭାକର    କଟୀରେ ବିରାଜେ ଗଜ ବ୍ୟାଘ୍ର ଚର୍ମାମ୍ବର ।
ଶ୍ରୀଭୁଜ ଯୁଗଳେ ଶୋଭେ ଅମୂଲ୍ୟ କେତନ    ଆର୍ତ୍ତଜନ ମାନଙ୍କର ଆରତ ଭଞ୍ଜନ ।
ମହାଯୋଗେଶ୍ୱର ଏକା ଏକାନ୍ତରେ ବସି    କେବଳ ହୃଦପଦ୍ମରେ ରାମନାମ ଘୋଷି ।
ଏମନ୍ତ ସମୟେ ବିଜେ ଜଗତର ମାତ    ଅତ୍ୟନ୍ତ ଆନନ୍ଦେ ସ୍ୱାମୀ ଶ୍ରୀମୁଖରେ ଆଗତ ।
ଶ୍ରୀକର ଅଞ୍ଜୁଳି କରି ମଉଳି ନିବେଶି    ପ୍ରଭୁ ପାଦେ ପୁଚ୍ଛା କଲେ ମନ୍ଦେ ମନ୍ଦେ ହସି ।

ଭୋ ସ୍ୱାମୀ ମୋହର ଯେବେ ଦୟା ଅଛି ଚିତ୍ତେ କଥାୟେ ପୁଚ୍ଛିବି ଏହି ଆଜ୍ଞା ହୋଉ ମୋତେ ।
ଜଗତର ପ୍ରାଣୀମାନେ ମହାଦୁଃଖୀ ହୋଇ    ଗୁହାରି କରନ୍ତି ମୋତେ ଅନ୍ନବସ୍ତ୍ର ପାଇଁ ।
ଅପୁତ୍ରମାନଙ୍କ ଦୁଃଖ କହିଲେ ନସରି    ରୋଦନ କରନ୍ତି ନିତି ବିଧବା ଯେ ସ୍ତ୍ରୀଏ ।
ବ୍ୟାଧିବନ୍ତ ମାନଙ୍କ ଆକୁଳ ଅବା ଯେତେ    ଶ୍ରୀମୁଖରେ ତାହା ମୁହିଁ ଜଣାଇବି କେତେ ।
ସଦାନନ୍ଦ ପ୍ରଭୁ ତୁମ୍ଭେ ଜଗତ ଈଶ୍ୱର    ଅଶେଷ କୋଟି ବ୍ରହ୍ମାଣ୍ଡ ଜୀବର ଠାକୁର ।

ତେଣୁକରି ଶ୍ରୀମୁଖରେ ଜଣାଇବି କେତେ    ଏ ସନ୍ଦେଶ ଫେଡି ଆଜ୍ଞା ହେବ ସ୍ୱାମୀ ମୋତେ ।
କେଉଁ ବ୍ରତ କଲେ ଏ ସଂସାର ନରନାରୀ    ଅପୁତ୍ର ଦୁଃଖ ବ୍ୟାଧି ବୈଧବ୍ୟ ହେବେପାରି ।
ତାହା ମୋତେ ବୁଝାଇ କହିବା ସଦାଶିବ    ଯେବେ ମୋହଠାରେ ହୃଦେ କିଛି କୃପାଥିବ ।

ଅନ୍ନପୂର୍ଣ୍ଣା ଶ୍ରୀମୁଖରୁ ଏମନ୍ତ ବାଣୀ ଶୁଣି    ମନ୍ଦେ ମନ୍ଦେ ହସି ଆଜ୍ଞା ଦେଲେ ଶୂଳପାଣି ।
ବୋଇଲେ ପାର୍ବତୀ ଯାହା ପଚାରିଲୁ ମୋତେ ଦୁର୍ଲ୍ଲଭ ଚରିତ ଏହୁ ରହୁ ଏ ଜଗତେ ।

ଅତି ଗୋପ୍ୟ କଥା ଏହୁ ଭବିଷ୍ୟ ପୁରଣ ମନବୁଦ୍ଧି ଦେଇ ଏହା ସାବଧାନେ ଶୁଣ ।
ସୋମନାଥ ମହାବ୍ରତ ଯେ ପ୍ରାଣୀ କରିବ ଦରିଦ୍ର ଅପୁତ୍ର ବ୍ୟାଧି ଦୁଃଖରୁ ତରିବ ।
ଆଉ ଯେ ଯା ବାଞ୍ଛିବେ ତା ପାଇବେ ଅବଶ୍ୟ କେବଳ ଏ ବ୍ରତ ମଧ୍ୟେ ମୂଳଟି ବିଶ୍ୱାସ ।
ତାହାଶୁଣି ମହାମାୟୀ ପଚାରିଲେ ପୁଣି କି ପ୍ରକାରେ ଏ ବ୍ରତ କରିବ ଜନ ପ୍ରାଣୀ ।
ବିଧିମତ କରି ଏହା କହି ଆଜ୍ଞା ହୋଉ ସଂସାର ମଧ୍ୟରେ ଯଶ ରଖ ମହାବାହୁ ।
ତାହା ଶୁଣି ଆଜ୍ଞା ଦେଲେ ପ୍ରଭୁ ବିଶ୍ୱେଶ୍ୱର ଶୁଣ ଶାକମ୍ଭରୀ ସତ୍ୟ ବଚନ ମୋହର ।
ଯେଉଁ ପ୍ରାଣୀ ଏ ବ୍ରତ କରିବା ଇଚ୍ଛା ହେବ ସୁବର୍ଣ୍ଣ ପ୍ରତିମା ହର ମୂର୍ତ୍ତି ନିର୍ମାଇବ ।
ନୋହିଲେ କଳଧଉତ କରି ହର ମୂର୍ତ୍ତି ଅଥବା ତାମ୍ରରେ କରି ସୁନ୍ଦର ଆକୃତି ।
ଆଚାର୍ଯ୍ୟ ଡାକିଣ ତାଙ୍କୁ ସମର୍ପିଣ ଦେବ ବେଦମନ୍ତ୍ର ପଢ଼ି ପ୍ରାଣ ପ୍ରତିଷ୍ଠା କରିବ ।
ପଞ୍ଚାମୃତେ ସ୍ନାନ କରି ପୂଜା କରୁଥିବ ଆଶ୍ୱିନାଖ୍ୟ ମାସ ଯଦି ପ୍ରବେଶ ହୋଇବ ।
ଶୁକ୍ଳପକ୍ଷ ନବମୀ ହୋଇବ ଯେଉଁ ଦିନ ହବିଷ୍ୟ କରିଣ ବାରେ ବେନିବାର ସ୍ନାନ ।
ଦଶମୀ ଦିବସ ରାତ୍ର ହୋଇ ସୂଚୀବନ୍ତ ବିଧିମତ କରିବ ଏ ସୋମନାଥ ବ୍ରତ ।
ଦିବସ ଭାଗରେ ସର୍ବ ନିର୍ମି କରିଥିବ ଦଶଖିଅ ସୂତ୍ରରେ ଯେ କୁଙ୍କୁମ ଲେପିବ ।
ଦଶଗୋଟି ଦୂର୍ବାକ୍ଷତ ପୃଥୁଳ ତଣ୍ଡୁଳ ଦଶ ଗ୍ରନ୍ଥି କରି ବ୍ରତ କରିବାର ମୂଳ ।
କୁଷ୍ମାଣ୍ଡ ଦଶ କୁସୁମ ଦଶ ବର୍ଣ୍ଣେ ପୁଷ୍ପ ଦଶବର୍ଣ୍ଣେ ଫଳମାନ କରିବ ଅବଶ୍ୟ ।
ଦଶଗୋଟି ମୁଦୁକ ପୃଥୁଳ ଭାବକରି ଘୃତ ନବାତରେ ମିଶ୍ରି ହୋଇଥିବ ସରି ।
ନାନା ବର୍ଣ୍ଣେ ଖଜା ଗଜା ନାଡ଼ି ନିସକୁଡି ଶ୍ରୀଫଳ କଦଳୀ ଖଇ ଗୁଙ୍ଗୁଡ଼ିରେ ବାଢ଼ି ।
ଯତନ କରିଣ ଏହା ପୂଜା କରୁଥିବ ଯେତେକଲେ ତେତେଅଛି ଯେବା ଭାଗ୍ୟେଥିବ ।
ଭିତ୍ତିମାନ ଧବଳାଇ ଚିତ୍ର ଲେଖାଇବ ନାନା ଲୀଳା ପିତୁଳାରେ ଶୋଭା ପାଉଥିବ ।
ସନ୍ଧ୍ୟାକାଳ ହେଲେ ସରି ଜାଳେ ଦୀପାବଳୀ ବାଳୀ ବୃଦ୍ଧା ମିଳି ସର୍ବେ ଦେବେ ହୁଳହୁଳି ।
ତାଳ କଂସାଳ ମର୍ଦ୍ଦଳ ବାଦ୍ୟ ନାଦ କରି କମ୍ବୁଧ୍ୱନ ସଂକୀର୍ତ୍ତନ କାହାଳୀ ତୂରୀ ଭେରୀ ।
ବହୁଜନ ମିଳିକରି ଉତ୍ସବ ଆନନ୍ଦ ଆଚାର୍ଯ୍ୟଙ୍କୁ ରାଇ ପୂଜା କରି ସଦାନନ୍ଦ ।
ନବ ପୀଠେ ନବ ବସ୍ତ୍ର ଶେଯାଇ ଆସନ ବିଜେ କରାଇବେ ତହିଁ ନେଇ ତ୍ରିଲୋଚନ ।
ଆଚାର୍ଯ୍ୟ ବସିଣ ତହିଁ ପୂଜା ବିଧି କରି ସମସ୍ତେ ଆନନ୍ଦେ ତହିଁ ବୋଲୁଥିବେ ହରି ।
ଯେତେ ଅବା ଲୋକ ତହିଁ ଥିବେ ବ୍ରତଚାରୀ ସଙ୍କଳ୍ପ ଘେନିମେ ତହିଁ ଆଚାର୍ଯ୍ୟଙ୍କୁ ବରି ।
କଳ୍ପନା କରିବ ତହିଁ ଦଶ ସମ୍ବତ୍ସର ଏ ବ୍ରତ କରିବି ଆଜ୍ଞା ହୋଉ ଦେବ ହର ।
ଯେ ଯାହା ମନରେ ଏକା ବାଞ୍ଛା କରିଥିବ ଅବିଘ୍ନ ଏ ବ୍ରତ ପୂର୍ଣ୍ଣ କର ସଦାଶିବ ।
ଯେଉଁ ବାଞ୍ଛା ଯାହାମନେ ଶଙ୍କରେ ମନାଇ ସୋମନାଥ ବ୍ରତ କଥା ବ୍ରତୀରେ ଶୁଣାଇ ।
ଆସନ ଶୁଦ୍ଧି କରିଣ ବସି ବିପ୍ରବର ଯେତେ ପୂଜା ଦ୍ରବ୍ୟମାନ ବାଢ଼ିବ ଚାମୁର ।
ଦଶ ବର୍ଣ୍ଣେ ଫଳ ପୁଷ୍ପ ବ୍ରତ ହିଁ ସହିତେ ମୁଦୁକାଦି ପୂଜା ଦ୍ରବ୍ୟମାନ ଥିବ ଯେତେ ।
ଶ୍ରୀ ଚାମୁରେ ବାଢ଼ି ତାହା ପ୍ରତି ପ୍ରତି କରି ଦ୍ୱିଜବର ବସି ପୂର୍ଣ୍ଣକୁମ୍ଭ ପୂଜା କରି ।

ଈଶ୍ୱରଙ୍କୁ ପୂଜାକରି ବିପ୍ର ହୃଦଗତେ    ପୂଜା ଦ୍ରବ୍ୟମାନ ଯେତେ ପୂଜି ବିଧିମତେ ।
ମଣାଇଁ ବଢ଼ାଇ ପୁନଃ ଆଚମନ ସାରି    କର୍ପୂର ତାମ୍ବୂଳ ବୀଟି ପୂଜାବିଧି କରି ।
ତଦନ୍ତରେ ନାନାରତ୍ନ ଅଳଂକୃତି ମାନ    ଶଙ୍କର ଅଗ୍ରତେ ତାହା କରି ନିବେଦନ ।
ପୁଣ ଦ୍ୱିଜ କର ଶଙ୍ଖେ ଜଳ ତିଳ ଭରି    ଦୂର୍ବାକ୍ଷତ କୁଶ ଯେ ତୁଳସୀ ଦଳଭରି ।
ବ୍ରତରକ୍ଷୀ ମାନଙ୍କ ପ୍ରବର ଗୋତ୍ର ଯେତେ    ସଙ୍କଳ୍ପ ଉଚାରି ଦେବ ଜଳ ତାଙ୍କ ହାତେ ।
ପୂଜାବିଧି ସାରିଣ ବ୍ରତ କଥା ଯେତେ    ବ୍ରତରକ୍ଷୀ ଶୁଣାଇମ ଶୁଣିମ ସମେତେ ।
କଥା ସାରି ବ୍ରତଧରି ମଂତ୍ରି ଦ୍ୱିଜବର    ଯେ ଯାହା ବ୍ରତ ନେଇ ଦେବ ତାର କର ।
ବ୍ରତଧରି ବ୍ରତରକ୍ଷୀ ଶଙ୍କର ସୁମରି    ଭୁଜରେ ବାନ୍ଧିବ ଯେଝା ମନେ ବାଞ୍ଛା କରି ।
ବାଞ୍ଛା ପୂର୍ଣ୍ଣକର ହର ପାର୍ବତୀଙ୍କ ପତି    ତୁମ୍ଭ ବିନା କେ ଖଣ୍ଡିବ ଏ ମୋର ଦୁର୍ଗତି ।
ଏମନ୍ତ ବୋଲିଣ ଶିବେ ବହୁ ସ୍ତୁତି କରି    ଅଷ୍ଟାଦଶ ଜାତି ମଧ୍ୟେ ପୁରୁଷ ବା ସ୍ତ୍ରୀ ।
ଯେ ଯାହା ହୃଦରେ ଯାହା ବାଞ୍ଛିବ ଅବଶ୍ୟ    ବାଞ୍ଛା ସିଦ୍ଧି କରି ତାକୁ ଦେବେ କୃତ୍ତିବାସ ।
ଏ ବ୍ରତର ମହିମା ଯେ କହିଲେ ନ ସରି    ଅପୁତ୍ରିକ ଦରିଦ୍ର ଦୋଷରୁ ହୋନ୍ତି ପାରି ।
ବ୍ୟାଧିବନ୍ତ ବ୍ୟାଧିରୁ ଅବଶ୍ୟ ହୋଇଯେ ମୁକ୍ତ    ବିଧବା ପାଇବ ମୁକ୍ତି ଦିଶେ ସ୍ୱର୍ଗ ପଥ ।
କେବଳ ଯେ ବ୍ରତ ଶିବେ ବିଶ୍ୱାସଟି ମୂଳ    ବିଶ୍ୱାସ ନ ଥିଲେ କେବେ ନ ମିଳଇ ଫଳ ।
ତଦନ୍ତରେ ପୂଜାର ମୁଦୁକ ଦଶ ଗୋଟି    ବ୍ରତରକ୍ଷୀ ଆଗ୍ରର୍ଯ୍ୟ ଭୁଞ୍ଜିବେ ତାହା ବାଣ୍ଟି ।
ଆଉ ଯେତେ ସେ ପୂଜାର ଦ୍ରବ୍ୟମାନ ଥିବ    ପ୍ରୀତି ମିତ୍ର କୁଟୁମ୍ବେ ତା କିଛି ବାଣ୍ଟି ଦେବ ।
ବାକି ଯେତେ ଧନବସ୍ତ୍ର ଅଳଂକୃତି ଥିବ    ଆନନ୍ଦରେ ଦ୍ରବ୍ୟମାନ ଆଗ୍ରର୍ଯ୍ୟଙ୍କୁ ଦେବ ।
ଏହିପରି କରିବ ଯେ ଦଶ ସମ୍ବତ୍ସର    ଅବଶ୍ୟ ସମ୍ପୂର୍ଣ୍ଣ ବାଞ୍ଛା ହୋଇବ ତାହାର ।
ପୂର୍ଣ୍ଣମୀ ସମ୍ପୂର୍ଣ୍ଣ ଯାଏ ପୂଜା କରୁଥିବ    ଉତ୍ସବ ଆନନ୍ଦେ କୁମ୍ଭଜଳେ ନିବେଶିବ ।
ଶୁଣ ଗୋ ପାର୍ବତୀ ଏହୁ ସୋମନାଥ ବ୍ରତ    କ୍ରିୟା କର୍ମ କହିଗଲୁ ରଖ ତୋର ଚିତ୍ତ ।
ଏହା ଶୁଣି ଚଣ୍ଡିକା ବୋଲନ୍ତି ମହାବାହୁ    ଆବର କଥାଏ ମୁଁ ପୁଚ୍ଛିବି ଆଜ୍ଞା ହୋଉ ।
ଏତେ ବ୍ରତ ଏହୁ ଯେବେ ପୂର୍ବେ କେହୁ କରି    କି କି ଫଳ ଲଭିଛି ତା କହ ଶୂଳଧାରୀ ।
ଏମନ୍ତ ଶୁଣି ଶଙ୍କର ମୃଦୁ ମୃଦୁ ହଂସି    ଆଜ୍ଞା ଦେଲେ ତାହା କହୁ ଶୁଣ ଶୁଭକେଶୀ ।
ଥିର ମନ ହୋଇ ଏକା ସାବଧାନେ ଶୁଣ    ସତ୍ୟଯୁଗ କଥା ଏହା ଏକଇ ବ୍ରାହ୍ମଣ ।
ମହାବେଦଗର୍ଭ ସେ ସକଳ ଶାସ୍ତ୍ରେ ଜିତା    ନାମ ଗୋଟି ତାହାର ଯେ ସଦାନନ୍ଦ ଓତା ।
ବହୁତ କୁଟୁମ୍ବ ତାର ପୁତ୍ର ନାତି ହୋଇ    ପୂର୍ବ କର୍ମ ଦୋଷୁ ଏକି ଭିକ୍ଷା ମାଗି ଖାଇ ।
କେତେଦିନ ଉତ୍ତରେ ଯେ ପଡ଼ିଲା କାନ୍ତାର    ଭିକ୍ଷା ହିଁ ନ ମିଳି ଚିନ୍ତା କଲା ବିପ୍ରବର ।
ପତ୍ନୀକି ବୋଇଲା ଏବେ କି ବୁଦ୍ଧି କରିବା    ଏ କାଳକାନ୍ତାରୁ ଆମ୍ଭେ କେମନ୍ତେ ତରିବା ।
ଯେଣେ ଗଲେ ତେଣେ କାହିଁ ନ ମିଳଇ କିଛି    ଏଣୁକରି ନିଷ୍ଚୟେ ମୁଁ ପ୍ରାଣଦେବି ମୂର୍ଚ୍ଛି ।
ତାହାଶୁଣି ବ୍ରାହ୍ମଣୀ ଯେ ସ୍ୱାମୀକି ବୋଇଲା    କେଉଁ ଦୁର୍ଭାଗ୍ୟରୁ ଆମ୍ଭ ଏ ଦଶା ପଡ଼ିଲା ।
ତୁମ୍ଭେତ ଶାହାସ୍ତ୍ରେ ଜିତା ସର୍ବ କଥା ଜାଣି    କାହାକୁ ସେବିଲେ କହ ସୁଖୀ ହୋନ୍ତି ପ୍ରାଣୀ ।

ତାହାଶୁଣି ବ୍ରାହ୍ମଣ ବୋଇଲା ସଖୀଶୁଣ ଯେଉଁ ନର ସେବାକରେ ଶଙ୍କର ଚରଣ ।
ଦରିଦ୍ର ଅବସ୍ଥା ଦୁଃଖ ପାର ହୋଯେ ଭଲେ ଗଜଶିସ୍ତ ଭୁଞ୍ଜଇ ବିଶ୍ୱାସ ଏକା ଥିଲେ ।
ତାହାଶୁଣି ବ୍ରାହ୍ମଣୀ ବୋଇଲା ସ୍ୱାମୀ ଶୁଣ ତୁମ୍ଭେ ଯାଇ ସେବାକର ଶଙ୍କର ଚରଣ ।
ପତି ବୋଲେ କେମନ୍ତେ ମୁଁ ଯିବି ଶୂନ୍ୟହସ୍ତେ ଈଶ୍ୱରଙ୍କୁ କି ଭେଟିବି ଏହା କହ ମୋତେ ।
ପତ୍ନୀ ବୋଲେ ଶୁଣ ସ୍ୱାମୀ ଆମ୍ଭର ଅବସ୍ଥା ସେହୁ ଯେବେ ଅନ୍ତର୍ଯାମୀ ଜାଣେ ସର୍ବକଥା ।
ଦରିଦ୍ର ଜନର ଧନ କିଞ୍ଚିତେ ହୋଇଲେ ମେରୁ ତୁଲ୍ୟ ଘେନି ସେ ମହାପ୍ରଭୁ ହେଲେ ।
ଅପାର ଦିନର ବିରି କଣି ଅଛି କିଛି ଅରୁଆ ତଣ୍ଡୁଳ ଖୁଦ କିଛି ହିଁ ମିଶିଛି ।
ରୁଟି ଗୋଟି କେତେ କରି ଦେବି ନିଅ ତାହା ଅବଶ୍ୟ ଶରଧା କରି ନେମେ ଚଉବାହା ।
ତାହାଶୁଣି ବ୍ରାହ୍ମଣ ଯେ ବୋଇଲା ବେଗେ କର ଶୁଣିଣ ବ୍ରାହ୍ମଣୀ ଯେ ହୋଇଲା ତରତର ।
ସୂଚୀବନ୍ତ ହୋଇ ରୁଟି ସାତ ଗୋଟି କଲା ମୁହୂର୍ତ୍ତ ମାତ୍ରକେ ଆଣି ସ୍ୱାମୀ କରେ ଦେଲା ।
ବ୍ରାହ୍ମଣ ଧଇଲା ତାହା ଅତି ଯତ୍ନ କରି ବୋଇଲା ମେଲଣି ଦିଅ ଶୁଣ ଗୋ ସୁନ୍ଦରୀ ।
ଦର୍ଶନ ପାଇଲେ ହର ଆସିବି ଲେଉଟି ନୋହିଲେ ଏତିକି ସଙ୍ଗ ଜାଣ ଗୋ ବିଘୋଷ୍ଟୀ ।
ପ୍ରିୟବତୀ ବୋଲେ ତୁମ୍ଭେ ସର୍ବ ଶୁଭେ ଯାଅ କେବଳ ଦାର୍ଦ୍ର୍ୟ କାଷ୍ଟାରେ ହୃଦେ କରିଥାଅ ।
ଅବଶ୍ୟ ଦର୍ଶନ ଦେବେ ପ୍ରଭୁ ତ୍ରିଲୋଚନ ଅନ୍ତର୍ଯାମୀ ଜାଣନ୍ତି ଦରିଦ୍ର ଦୁଃଖୀ ମନ ।
ତାହା ଶୁଣି ବ୍ରାହ୍ମଣ ଉତ୍ତରାଭିମୁଖେ ଈଶ୍ୱରଙ୍କୁ ସୁମରି ଚଳିଲା ମହାଦୁଃଖେ ।
ଏହି ମତ କେତେ ଦିନ ପଥେ ଯାଉଯାଉ ତାର ହୃଦକାଷ୍ଟା ଯେ ଜାଣିଲେ ମହାବାହୁ ।
ବ୍ରାହ୍ମଣ ସ୍ୱରୁପେ ଆଗେ ମିଳିଲେକ ଆସି ଉଭହୋଇ ପୁଚ୍ଛିକଲେ ମନ୍ଦେ ମନ୍ଦେ ହସି ।
କାହିଁର ବ୍ରାହ୍ମଣ ତୁମ୍ଭେ ନାମ ଗୋଟି କିସ ସ୍ୱରୁପ କହିବ ତୁମ୍ଭେ ଯିବ କେଉଁ ଦେଶ ।
ତାହାଶୁଣି ବ୍ରାହ୍ମଣ ବୋଇଲା ସତ୍ୟ ମୋର ବଙ୍ଗଦେଶ ମନୋହର ପାଟଣା ମୋହର ।
ନାମ ଗୋଟି ମୋହର ସଦାନନ୍ଦ ଓତା ସ୍ୱରୁପ କହିଲି ମିଥ୍ୟା ନୁହଇ ସର୍ବଥା ।
ଅନେକ ପ୍ରକାରେ ମୁଁ ଦରିଦ୍ର ଦୁଃଖ ଲଭି ଯାଉଅଛି ଈଶ୍ୱରଙ୍କୁ ଦର୍ଶନ କରିବି ।
ଶ୍ରୀ ଛାମୁରେ ଜଣାଇମି କଷ୍ଟ ଦୁଃଖମାନ କି ପ୍ରକାରେ ରଖିବେ ମୋ କୁଟୁମ୍ବ ଜୀବନ ।
ତାହାଶୁଣି ସଦାଶିବ ହୃଦେ କଲେ ଚିନ୍ତା କି ପ୍ରକାରେ ଭଙ୍ଗିବି ମୁଁ ବିପ୍ର ଦାର୍ଦ୍ର୍ୟକଥା ।
ବୋଇଲେ ହୋ ବିପ୍ରବର ମିତ୍ର ହେଲମୋର ମୋର ନାମ ସଦାନନ୍ଦ ବିପ୍ର ଦଣ୍ଡଧର ।
ତୁମ୍ଭେ ଏବେ ଯେଣେ ଯିବ ମୁହିଁ ଯିବି ଗ୍ୱଲ ଦୁହେଁ ମିତ୍ର ହେଲଇ ଏ ସବୁ କଥା ଭଲ ।
ଏମନ୍ତ ବୋଲିଣ ବିପ୍ର ସଙ୍ଗେ ସଙ୍ଗେ ଗଲେ କେତେ ଦୂର ଉତ୍ତାରୁ ସେ କଥାଏ ପାଞ୍ଚିଲେ ।
ବୋଇଲେ ହେ ମିତ ମୋତେ କ୍ଷୁଧାଏ ଲାଗୁଛି ଭୋଜନ କରିବା କିବା ତୁମ୍ଭଠାରେ ଅଛି ।
ତାହାଶୁଣି ବ୍ରାହ୍ମଣ ବୋଇଲେ ତୁମ୍ଭେ ଶୁଣ କିଛି ଆଣି ନାହିଁ ମୁଁ ତ ଦରିଦ୍ର ବ୍ରାହ୍ମଣ ।
ତାହାଶୁଣି ସଦାଶିବ ବୋଇଲେ ହେ ମିତ କାଖେଯାକି ଅଛ କିସ ତାହା କହ ସତ ।
ବ୍ରାହ୍ମଣ ବୋଇଲା ମୋର ପ୍ରିୟବତୀ ନାରୀ ସାତଗୋଟି ରୁଟି ଦେଇ ଅଛି ଶୁଦ୍ଧ କରି ।
ମୋତେ ସେ ବୋଇଲା ଏହା ଈଶ୍ୱରଙ୍କୁ ଦେବ ଦୁଃଖୀ ନାରୀ ଦେଇଅଛି ବୋଲିଣ କହିବ ।

ପିଣ୍ଡେ ପ୍ରାଣ ଥିଲେ ଏହା ନ କରିବ ଆନ ନିଷ୍ଠେ ଜାଣିଥାଅ ଏହା ଅମୁଣିଆ ଧନ ।
ତେଣୁକରି ରଖିଅଛି ଅତି ଯତ୍ନ କରି କେବଳ ଦେଖିଲେ ଦେବି ପ୍ରଭୁ ତ୍ରିପୁରାରି ।
ମୋର ଅଧିକାର ଏଥେ ନାହିଁ ବୋଲି ଜାଣ ଆଉଥରେ ମିତ ମୋତେ ନ ବୋଲ ଏମାନ ।
ତାହାଶୁଣି ସଦାନନ୍ଦ ବୋଇଲେ ବଚନ ପ୍ରାଣଗଲ ଉତ୍ତାରୁ ସେ କି କରିବ ଧନ ।
ପ୍ରିୟାରୁ କି କାର୍ଯ୍ୟ ଅଛି ତାହା ଦୂର କର ଦେହେ ପ୍ରାଣଥିଲେ ସିନା ପୁଜିବ ଶଙ୍କର ।
ବ୍ରାହ୍ମଣ ବୋଇଲ ମିତ ମୋହବଳେ ନୋହେ ରବି ଚନ୍ଦ୍ର ଉଦେ ଅସ୍ତ ହୋଉଥିବା ଯାଏ ।
ତାହା ଶୁଣି ଚକି ଶିବ ବୋଇଲେ ବଚନ ରୁଟି ନୋହେ ପର ଆଉ ଥିବ କି କି ଧନ ।
ଦେଖାଅତ ଥରେ ମୋତେ ପ୍ରତେ ଯିବ ମନ ଦୁଇଲେକ ବାଣ୍ଟି ସିନା କରିବା ଭୋଜନ ।
ମିତ୍ର ହେବାଠାରେ ମୋତେ କପଟ କିପାଇଁ ଜାଣିଲି ହେ ମିତ୍ର ମୋହ ପରେ ଦୟା ନାହିଁ ।
ଏମନ୍ତ ବୋଲିଣ ହର ବଢ଼ାଇଲେ କର କାଖରୁ ଛଡ଼ାଇ ଫେଇ ଦେଖିଲେ ସତ୍ୱର ।
ସୁବର୍ଣ୍ଣ କାକର ହୋଇଅଛି ସାତଗୋଟି ମୋ ହସ୍ତେ ଦେଲ ମୁହିଁ ବାନ୍ଧିଅଛି ଗଣ୍ଠି ।
ତାହା ଏବେ ଦେଖୁ ଦେଖୁ ଯେବେ ହେଲ ସୁନା କେବଳ ଜାଣିଲି ଏହା ତୁମ୍ଭ ଭାଗ୍ୟ ସିନା ।
ଏ ଧନରେ ମୋହର ନୋହେ ଅଧିକାର ତୁମ୍ଭ ଭାଗ ଗୋଟି ନେଇ ଯାହା ତାହା କର ।
ମୋର ଭାଗଗୋଟି ଯାହା ଇଶ୍ୱରଙ୍କୁ ଦେବ ତହିଁ ଅବା କିଛି କିଛି ଭାଗ୍ୟ ମୋର ହେବ ।
ତାହା ଶୁଣି ଇଶ୍ୱର ବୋଇଲେ ମିତ ଶୁଣ ଜାଣିଲି ତ ତୁମ୍ଭର ତ କିଛି ନାହିଁ ଜ୍ଞାନ ।
ଏବେ ମୁଁ କହୁଅଛି ଏହୁ ଧନ ଧର ବାହୁଡ଼ିଣ ଯାଅ ବେଗେ ବେଗେ ନିଜପୁର ।
ବିକା କିଣା କରି ଏହା ସୁଖେ ବସି ଖାଅ ବିଅର୍ଥ ଶ୍ରମରେ ଆଉ କେଣିକି ନ ଯାଅ ।
ତାହା ଶୁଣି ବିପ୍ରବର ବିକଳିତ ମନେ ବୋଇଲ ମୁଁ ଇଶ୍ୱରଙ୍କୁ ନ ଦେଖି ନୟନେ ।
ସୃଷ୍ଟି ପ୍ରଳେ ହେଲେ ମୁଁ ନ ଯାଏ ଆଉ ଘର ଏହୁ କଥା ସତ୍ୟ ବୋଲି ଜାଣ ବିପ୍ରବର ।
ଏ ପିଣ୍ଡରେ ପ୍ରାଣ ଥିଲେ ନୁହଇ ଏ କଥା ଇଶ୍ୱରଙ୍କୁ ନ ଦେଖିଲେ ନ ଯାଏ ସର୍ବଥା ।
ତାହା ଶୁଣି ସଦାଶିବ ବୋଇଲେ ହେ ମିତ ଏତେ କାଷ୍ଠା ହୋଇ ଯେବେ ଅଛି ତୁମ୍ଭ ଚିତ୍ତ ।
ଏ ସୁନାରେ ଆଉ କିସ ଅଛି ପ୍ରୟୋଜନ ବୋଲି ଫିଙ୍ଗିଦେଲେ କାହିଁ ହୋଇଗଲ ଶୂନ୍ୟ ।
ଯେଣେ ଇଚ୍ଛା ତେଣେ ଯାଅ ତୁମ୍ଭ ମନବାଞ୍ଛା ଆଉ କିମ୍ପା ତୁମ୍ଭ ସଙ୍ଗେ ଆମ୍ଭେ ଯିବୁ ତୁଚ୍ଛା ।
ଏମନ୍ତ ବୋଲିଣ ତହିଁ ବିଜୟେ ଇଶାନ କେତେ ଦୂରେ ଯାଇ ତହିଁ ହେଲେ ଅନ୍ତର୍ଦ୍ଧାନ ।
ତାହା ଦେଖି ଦ୍ୱିଜବର ଆଚମ୍ବିତ ହେଲ ଇଶ୍ୱରଙ୍କୁ ଚିନ୍ତା କରି ତହୁଁ ଚଳିଗଲ ।
କେତେଦୂର ଉତ୍ତାରୁ ଦେଖିଲ ଘୋରବନ କ୍ରୀଡ଼ା କରୁଛନ୍ତି ଏକା ପଶୁ ଜନଶୂନ୍ୟ ।
କହି ନୋହେ ସେ ବନସ୍ତେ କି ଉପମା ଦେବା ତାଳ ହେନ୍ତାଳତମାଳ ନଟୀକାଳ ଶୋଭା ।
ଜାମ୍ବ ଜମ୍ବୀର କପିଥ କମଳା ପନସ ଲେମ୍ବାଉ ଜେଉଠ ଟଭ କରୁଣା ଅଶେଷ ।
ଆମ୍ବ ଆମ୍ବଡ଼ା ତେନ୍ତୁଳି ନିମ୍ବ କେନ୍ଦୂମାନ ନାନା ସୁମନସେ ବନ ବିଶେ ଶୋଭବନ ।
ଚମ୍ପା ନାଗେଶ୍ୱର ଆଦି କଦମ୍ବ କୋରକ ଜାଇ ଯୂଥି ମଲ୍ଲିକା ମାଳତୀ କୁରୁବକ ।
କହି ନୋହେ ବଚନେ ସେ ବନ ଶୋଭକିଛି କ୍ରୀଡ଼ା କରୁଛନ୍ତି ତହିଁ ନାନାବର୍ଣ୍ଣେ ପକ୍ଷୀ ।

ଶୁକ ସାରୀ କୋକିଳ ପାରବତ ମାନ ଅନେକ ପକ୍ଷୀଙ୍କ ସ୍ୱନେ ପୂରୁଅଛି ବନ ।
ସିଂହ ମୃଗ ଶାର୍ଦ୍ଦୂଳ ଯେ ବ୍ୟାଘ୍ର ଗଜମାନ ବରାହ ହରିଣ ଆଦି କରନ୍ତି ଗର୍ଜନ ।
ଏମନ୍ତ ବନସ୍ତେ ପଶି ଯାଉ ଯାଉ ପଥେ କ୍ଷୁଧାରେ ବ୍ରାହ୍ମଣ ମୂର୍ଚ୍ଛା ପଡ଼ିଲା ବନସ୍ତେ ।
ତାହା ଜାଣି ସଦାଶିବ ଦୀନ ଚିନ୍ତାମଣି ମାୟାରେ ବୈଷ୍ଣବ ରୂପ ହେଲେ ଶୂଳପାଣି ।
ଜଟା ମୁକୁଟ ମଉଳି ବିଭୂତି ଶ୍ରୀ ଅଙ୍ଗ ମହାବ୍ୟାଘ୍ର ଚର୍ମରେ ଘୋଡ଼ାଇଛନ୍ତି ଅଙ୍ଗ ।
ଦଣ୍ଡ କମଣ୍ଡଳ ହସ୍ତେ ଅତି ଜ୍ୟୋତିର୍ମୟେ ବିପ୍ରବର ପାଶେ ଆସି ହୋଇଲେ ବିଜୟେ ।
ଡ଼ାକ ଗୋଟି ଗ୍ରିରି ଯେ ଡାକିଲେ ଦେବହର ଡ଼ାକ ନ ଶୁଣିମାତ୍ରୁ ଧଇଲେ ବିପ୍ରକର ।
ଉଠ ଉଠ ବ୍ରାହ୍ମଣ ବୋଲିଣ ଡାକ ଦ୍ୟନ୍ତେ ଚେତା ପାଇ ଦ୍ୱିଜବର ଉଠିଲା ତୁରିତେ ।
ଶ୍ରୀଭୁଜ ପରଶୁ ବଳ ହେଲା ଅପ୍ରମିତ ଅନାଇ ବୈଷ୍ଣବ ଚିହ୍ନି କଲା ଦଣ୍ଡବତ ।
ବୋଇଲା ସିଦ୍ଧ ସାଧୁ କାହୁଁ ବିଜେ କଲ ଏ ମୋହର ମୃତ ପିଣ୍ଡେ ଜୀବଦାନ ଦେଲ ।
ତାହା ଶୁଣି ବ୍ୟୋମକେଶ ଆଜ୍ଞାଦେଲେ ଏତେ ଆମ୍ଭେ ତ ଅତିଥି ଭ୍ରମୁଥାଉ ଏ ଜଗତେ ।
ନଦୀ ବନ ପର୍ବତ ଯେ ନଗ୍ର ଗ୍ରାମ ଦେଶ ସର୍ବ ସ୍ଥାନେ ଭ୍ରମୁଥାଉ ରଜନୀ ଦିବସ ।
ଏ ଘୋର ବନସ୍ତ ଯେ ଭ୍ରମଣ କରୁଥିଲୁ ଦଇବ ଯୋଗରୁ ଆସି ତୁମ୍ଭଙ୍କୁ ଦେଖିଲୁ ।
ବ୍ୟାଘ୍ର ସିଂହ ଶାର୍ଦ୍ଦୂଳ ଭଲୁଙ୍କ ଥାନ ଏହି ଏଥେ ଆସି ପ୍ରବେଶ ହୋଇଲ କାହିଁପାଇଁ ।
ଅକାରଣେ ଜୀବଯାତ୍ରା ଈଶ୍ୱରେ ରଖିଲେ ଏବେ କାହିଁ ଯିବ ଯାଅ ଶୀଘ୍ର ହୋଇ ଭଲେ ।
ତା ଶୁଣି ବିପ୍ର ବୋଇଲା ଶୁଣିମା ଗୋସାଇଁ ମହାଦୁଃଖୀ ଦରିଦ୍ର ବ୍ରାହ୍ମଣ ଅଟଇ ।
ବହୁତ କୁଟୁମ୍ବ ମୋର ନ ପାରଇ ପୋଷି ଈଶ୍ୱରଙ୍କୁ ଖୋଜୁଅଛି ବନେ ଦେଶେ ପଶି ।
ଦର୍ଶନ ପାଇଲେ ସିନା ଜଣାଇବି ଦୁଃଖ ତାହା ଶୁଣି ହଂସି ଆଜ୍ଞା ଦେଲେ ପଞ୍ଚମୁଖ ।
ନିରଞ୍ଜନ ପୁରୁଷ ଯେ ଅଟନ୍ତି ଶଙ୍କର ତାହାଙ୍କୁ ଦେଖିବା ସାଧ୍ୟ ଅଛଇ କାହାର ।
କେବଳ ବିଶ୍ୱାସ ଭାବ ସତ୍ୟ ଭାଷା ଯାର ତାହାକୁ ଦର୍ଶନ ଏକା ଦିଅନ୍ତି ଶଙ୍କର ।
ଭାବକୁ ନିକଟ ସେହୁ ଅଭାବକୁ ଦୂର ତାହାକୁ ଦର୍ଶନ ଏକା ହେବ ବିପ୍ରବର ।
ଆମ୍ଭେ କହୁଅଛୁ ଏବେ ଯାଅ ଏଥୁ ଫେରି ବିଅର୍ଥ ଶ୍ରମରେ ଆଉ ନମର ତୁ ହେରି ।
ତାହା ଶୁଣି କ୍ରୋଧରେ ବୋଇଲା ବିପ୍ରବର ତେବେ ଆଉ ଏ ସଂସାରେ ନାହାନ୍ତି ନା ହର ।
ଅନ୍ତର୍ଯାମୀ ପ୍ରଭୁ ସେ ମହିମା ମହାମେରୁ ପ୍ରଭୁପଣ ଛାଡ଼ିଲେ କି ସକଳ ହୃଦରୁ ।
ଚାହିଁ ଯେବେ ଏ ସଂସାର ଅଟଇ ତାହାର ଅଶେଷ ବ୍ରହ୍ମାଣ୍ଡ ଯେବେ ତାର ଖେଳ ଘର ।
ତେବେ ମୋ ଭରସା ଅଛି ଦର୍ଶନ ହେବ ବାରେ ଦୁଃଖ ସୁଖ ଜଣାଇମି ପ୍ରଭୁଙ୍କ ଛାମୁରେ ।
ନୋହିଲେ ଏ ଜୀବ ଯାଉ ପ୍ରଭୁ କୀର୍ତ୍ତି ଥାଉ ଲେଉଟି ଯିବାର କଥା କେବେ ନୋହେ ଆଉ ।
ପଶ୍ଚିମେ ଉଦୟେ ଯେବେ ହେବେ ଦିନକର ଜଳରେ ନ ବୁଡ଼ି ଯେବେ ଭାସିବ ପଥର ।
ତେବେ ହେ ମୋ ଫେରିଯିବା କଥା ନାହିଁ ଜାଣ ଯାଉ ବୋଲି ପାଚ୍ଛୋରି ମୁଁ ଦେଇଅଛି ପ୍ରାଣ
ପ୍ରଭୁ ସିନା ଦର୍ଶନ ଦେବାର ବଡ଼ ଦୂର ଅଟଇ ପ୍ରମାଣ ମୋର ପରାଣ ଯିବାର ।
କୋଟିବାର ଦଣ୍ଡବତ ଅଟଇ ମୋହର କାହିଁ ବିଜେ କରିଅଛ ବେଗେ ବିଜେ କର ।

ଯେମନ୍ତ କାଷ୍ଠା ବଚନ ଶୁଣି ବ୍ରାହ୍ମଣର ଦିବ୍ୟଭୂତ ହୋଇ ଆଜ୍ଞା ଦେଲେ ବିଶ୍ୱମ୍ଭର ।
ଆସ ହୋ ବ୍ରାହ୍ମଣ ଏବେ ମୋହର ସଙ୍ଗତେ ଯହିଁ ଛନ୍ତି ସଦାଶିବ ଦେଖାଇବି ତୋତେ ।
ତାହା ଶୁଣି ଦ୍ୱିଜବର ହରପାଦେ ପଡ଼ି ଉଠି ଉଭା ହେଲେ ଶିରେ ବେନିକର ଯୋଡ଼ି ।
ଆଗେ ଆଗେ ଶଙ୍କର ପଛରେ ବିପ୍ରବର ତହୁଁ ଚଳିଗଲେ ଦୁହେଁ ଥୋକାଏକ ଦୂର ।
କଳ୍ପନା କରନ୍ତେ ମନେ ପ୍ରଭୁ ମହାରୁଦ୍ର ଆଗରେ ହୋଇଛି ଅତି ଚମତ୍କାର ଭଦ୍ର ।
ଜଗତୀ ଅଟ୍ଟାଳି ଶୋଭା କହିଲେ ନ ସରି ଯେଣିକି ଚାହିଁଲେ ତେଣେ ଅଟ୍ଟାଳିରେ ପୂରି ।
ଦେଖାଇଣ ଦେଲେ ପ୍ରଭୁ ଶ୍ରୀହସ୍ତରେ ଠାରି ଯାଅ ହୋ ବ୍ରାହ୍ମଣ ଯେଥେ ବିଜେ ତ୍ରିପୁରାରି ।
ମନ ବାଞ୍ଛା ସିଦ୍ଧି ତୋର ହୋଇବ ଅବଶ୍ୟ ଯାଇଣ ଦର୍ଶନ କର ପ୍ରଭୁ କୃତ୍ତିବାସ ।
ଏମନ୍ତ କହିଣ ପ୍ରଭୁ ହେଲେ ଅନ୍ତର୍ଦ୍ଧାନ ସେହିପୁରେ ବିଜୟେ ହୋଇଲେ ତ୍ରିଲୋଚନ ।
ବ୍ରାହ୍ମଣ ସେ ପୁରେ ପଶି ଅନାଇଣ ଦେଲା ଜ୍ୟୋତିର୍ମୟ ପୁର ଦେଖି ଚମତ୍କାର ହେଲା ।
ରତ୍ନ ସିଂହାସନେ ବିଜେ ପ୍ରଭୁ ବିରୂପାକ୍ଷ ଦର୍ଶନ ମାତ୍ରକେ ବିପ୍ର ହେଲା କୋଟି ମୋକ୍ଷ ।
ମଉଳି ମଣ୍ଡିତ ଗଙ୍ଗା ପ୍ରଭୁ ଶଶଧର ଫଣୀ ମଣି ଜଟାପରେ କରେ ଫୁଁଫୁଁକାର ।
ଶ୍ରୀକଣ୍ଠେ ସ୍ଫଟିକ ମାଳ ରୁଦ୍ରାକ୍ଷର ହାର ତ୍ରିଶୂଳ ଡମ୍ବରୁ ଆଦି ଶୋଭଦ ଶଙ୍କର ।
କଟୀପରେ ବ୍ୟାଘ୍ରାମ୍ବର ଦିଶୁଅଛି ଶୋଭା କୋଟୀ ପୂର୍ଣ୍ଣଚନ୍ଦ୍ର ଜିଣି ଶ୍ରୀଅଙ୍ଗର ପ୍ରଭା ।
ଅର୍ଦ୍ଧାଙ୍ଗେ ବିଜୟେ ସେ ପାର୍ବତୀ ମହାଦେବୀ ବ୍ରହ୍ମାଣ୍ଡ ମଣ୍ଡୁଛି ସେହୁ ଅପର୍ଣ୍ଣାଙ୍କ ଛବି ।
ଅଷ୍ଟନିଧି ଆଦି ସେବା ଅଭୟ ଚରଣେ ବିପ୍ର ରାମଦାଶ ଏହା ପାଦପଦ୍ମେ ଭଣେ ।
ଏମନ୍ତ ଶୋଭାକୁ ଦେଖି ବିପ୍ର ପାଦେ ପଡ଼ି ଉଠି ଉଭା ହେଲା ମସ୍ତକେ କର ଯୋଡ଼ି ।
ବିପତ୍ତି ଗୁଡ଼ିଲା ବୋଲି ବିଚାରିଲା ମନେ ଅନେକ ସ୍ତୁତି ବିଚାରି ଉଚ୍ଚାରି ବଦନେ ।
ଜୟ ଜୟ ସଦାଶିବ ବ୍ରହ୍ମାଣ୍ଡର ନାଥ ଅଶେଷ କୋଟୀ ଜୀବର ଅଟ ତାତ ମାତ ।
ଦର୍ଶନ ପାଇଲି ପ୍ରଭୁ ଧନ୍ୟ ମୋ ଜୀବନ ଧନ୍ୟ ମୋର ମାତା ପିତା ଧନ୍ୟ ମୋ ନନ୍ଦନ ।
ଧନ୍ୟ ମୋର କୁଳବତୀ ଧନ୍ୟ ମୋର କୁଳ ଦର୍ଶନ ପାଇଲି ମୋର ଜୀବନ ସଫଳ ।
ସିଦ୍ଧ ସାଧୁ ଯୋଗୀ ଇନ୍ଦ୍ର ଇତ୍ୟାଦି ମୁନିମାନେ ଦର୍ଶନ ନ ପାନ୍ତି ଯା ତପ କରି ଧ୍ୟାନେ ।
ପୂର୍ବ ଜନ୍ମେ କେତେ ତପ କରିଥିଲି ଅବା କେତେ ଅବା କରିଥିଲି ସାଧୁଜନ ସେବା ।
ଜପ ତପ ହୋମଯଜ୍ଞ କରିଥିଲି କେତେ ତେଣୁ ଅବା ପ୍ରଭୁଙ୍କୁ ମୁଁ ଦେଖିଲି ସାକ୍ଷାତେ ।
ଅକର୍ମୀକୁ କର୍ମଦାତା ଅଟେ ଦେବ ହର ନିଶ୍ଚୟେ ଜାଣିଲି ଦୀନଜନଙ୍କ ସୋଦର ।
ତାହା ଶୁଣି ହସି ଆଜ୍ଞା ଦେଲେ ଦେବହର କି ବର ମାଗିବୁ ବର ଘେନ ବିପ୍ରବର ।
ବ୍ରାହ୍ମଣ ବୋଇଲା ପ୍ରଭୁ ମାଗିବି ମୁଁ କିସ ଦାରିଦ୍ର୍ୟ ଅବସ୍ଥା ମୋ କେମନ୍ତେ ହେବ ନାଶ ।
ଆଉ କିଛି ମାଗୁ ନାହିଁ ଏତେକ ମାଗୁଣି ତାହା ଶୁଣି ଆଜ୍ଞାଦେଲେ ପ୍ରଭୁ ଶୂଳପାଣି ।
ବୋଇଲେ ତୁ ସୋମନାଥ ବ୍ରତ ଗୋଟିକର ଯେ ତୋହର ମନବାଞ୍ଛା ହୋଇବ ବାହାର ।
ବ୍ରାହ୍ମଣ ବୋଇଲା ବ୍ରତ କରିବି କେମନ୍ତେ ବୁଝାଇଣ କହି ଆଜ୍ଞା ହୋଉ ପ୍ରଭୁ ମୋତେ ।

ତାହା ଶୁଣି ବିପ୍ରଙ୍କୁ କହିଲେ ବିଧିମତେ    ପୂର୍ବେ ସେ ପାର୍ବତୀ ଆଗେ କହିଥିଲେ ଯେତେ ।
କାଞ୍ଚନ ରଜତ ତାମ୍ର ପ୍ରତିମା କରିବା    ବିପ୍ର ହସ୍ତେ ଶୁଦ୍ଧ କରି ପୂଜା କରୁଥିବା ।
ଆଶ୍ୱିନ ମାସ ପ୍ରବେଶ ଶୁକଳ ପକ୍ଷରେ    ନବମୀରେ ସ୍ନାନ କରି ଭୁଞ୍ଜି ଏକବାରେ ।
ଦଶମୀରେ ଉପବାସ ଯେବା ବ୍ରତାଗ୍ରହୀ    ସନ୍ଧ୍ୟା ହେଲେ ବ୍ରତ ଗୋଟି ବିଧିମତ କରି ।
ଆଚାର୍ଯ୍ୟ ଡକାଇ ପୂଜା କରିବ ଶଙ୍କର    ନବ ବସ୍ତ୍ରେ ରଖି ଆଗେ ମଣ୍ଡି ଅଳଂକାର ।
ଦଶବର୍ଣ୍ଣେ ଫଳ ପୁଷ୍ପ କୁଷ୍ମାଣ୍ଡ ଦଶପୁଷ୍ପ    ଦଶଗୋଟି ମୁଦୁକ ଯେ କରିବ ଅବଶ୍ୟ ।
ଦଶ ଖିଅ ସୁତା ବ୍ରତ ଦଶ ଗଣ୍ଠି କରି    ଦୂର୍ବାକ୍ଷତ ତଣ୍ଡୁଳ ଗଣ୍ଠିରେ ଥିବ ଭରି ।
ଆବର ଉପନ ପୂଜା ଦ୍ରବ୍ୟମାନ ଯେତେ    ସମସ୍ତ ବାଢ଼ିବ ନେଇ ଶିବଙ୍କ ଅଗ୍ରତେ ।
ଧାଡ଼ି ଧାଡ଼ି କରି ତହିଁ ଜଳେ ଦୀପାବଳୀ    ଶୁଦ୍ଧାଙ୍ଗନା ମାନେ ମିଳି ଦେବେ ହୁଳହୁଳି ।
ଅନେକ ଉତ୍ସବ ଆନନ୍ଦ ନାଟ ସଙ୍କୀର୍ତ୍ତନ    ଶୁଚିବନ୍ତେ ବସି ବିପ୍ର ପୂଜିବ ସେ ମାନ ।
ପୂଜାସାରି କଥାମାନ ଶୁଣାଇବ ବ୍ରତେ    ବ୍ରତାଗ୍ରହୀ ମାନେ ତାହା ଲଇବାକ ହସ୍ତେ ।
ସଂକଳ୍ପ କରିବ ମନେ ସୁମରି ଶଙ୍କର    ଏ ବ୍ରତ କରିବୁ ଆମ୍ଭେ ଦଶ ସମ୍ବତ୍ସର ।
ଅବିଘ୍ନରେ ପୂର୍ଣ୍ଣହେବ ବାଞ୍ଛା ହେବ ସିଦ୍ଧି    ଏହି ଆଜ୍ଞା ଆମ୍ଭଙ୍କୁ ଯେ ଦେବ ଦୟାନିଧି ।
ଏମନ୍ତ ବୋଲିଣ ପୂଜାବିଧି କର୍ମ ସାରି    ମୁଦୁକ ବାଣ୍ଟି ଭୁଞ୍ଜିବ ବିପ୍ରଜଣ ଘରି ।
ବାକି ଯେତେ ପୂଜା ଦ୍ରବ୍ୟ ଦକ୍ଷିଣା ସହିତେ    ଆନନ୍ଦରେ ଦେବ ତାହା ଆଚାର୍ଯ୍ୟର ହସ୍ତେ ।
ଉତ୍ସବ ଆନନ୍ଦେ ରାତ୍ର ବଞ୍ଚି ଉଜାଗର    ରଜନୀ ପାଇଲେ ଯିବ ଯେ ଯାହାର ପୁର ।
ପୂର୍ଣ୍ଣମୀ ଯାଏ ଶିବ ପୂଜା କରୁଥିବ    ପ୍ରତିପଦ୍ ପ୍ରଭତୁ ଲୋକ ବୃନ୍ଦ ଗୋଟି ହେବ ।
ଅନେକ ପ୍ରକାରେ ତହିଁ ଉତ୍ସବାନନ୍ଦ କରି    ମସ୍ତକରେ ପୂର୍ଣ୍ଣକୁମ୍ଭ ଧରି ବ୍ରତାଗ୍ରହୀ ।
ଆଚାର୍ଯ୍ୟଙ୍କୁ ସଙ୍ଗେଧରି ସ୍ନାନ କରିଯିବେ    ପୂର୍ଣ୍ଣକୁମ୍ଭ ଫଳ ପୁଷ୍ପ ଜଳେ ନିବେଶିବେ ।
ସ୍ନାନ ସାରି ଲେଉଟି ଆସିବ ନିଜପୁରୀ    କୁଟୁମ୍ବ ଘେନି ଅନ୍ନ ଭୋଜନ ସେ କରି ।
ଏହିପରି କରିବ ଯେ ଦଶ ସମ୍ବତ୍ସର    ସେ ଯେଉଁ ବାଞ୍ଛିବ ବାଞ୍ଛା ସିଦ୍ଧ ହେବତାର ।
ଯାଅ ହୋ ବ୍ରାହ୍ମଣ ଏବେ ତୋର ନିଜପୁରୀ    ଏହି ବ୍ରତ କରଇବୁ ଯେତେ ନରନାରୀ ।
ତା ଶୁଣି ବିପ୍ରବର ଅତ୍ୟନ୍ତ ଆନନ୍ଦେ    ଅଗଣିତ ପ୍ରଣମିତ କରି ହର ପାଦେ ।
ମେଲାଣି ହୋଇଣ ତହିଁ ବିପ୍ରଗଲା ଚଳି    କେତେଦୂର ଉତ୍ତାରୁ ଯେ ଦେଖିଲା ଗୋପାଳୀ ।
ଦଧିଭଣ୍ଡ ମୁଣ୍ଡେ ଧରି ଯାଉଥିଲା ପଥେ    ତାକୁ ଡାକିଲା ବିପ୍ର ଠାରି ନିଜ ହସ୍ତେ ।
ଗୋପାଳୁଣୀ ଆସି ଯହୁଁ ହୋଇଲା ଅଗ୍ରତେ    ବ୍ରତ କଥା ତାହାକୁ କହିଲା ବିଧିମତେ ।
ବୋଇଲା ଏ ସୋମନାଥ ବ୍ରତ ଗୋଟିକର    ନିଶ୍ଚୟେ ଦରିଦ୍ର ଦୁଃଖ ଛୁଡ଼ିବ ତୋହର ।
ତାହା ଶୁଣି ଗୋପାଳୁଣୀ ନାହିଁ ନାହିଁ କଲା    ମୁଣ୍ଡୁ ଖସି ଦଧିଭଣ୍ଡ ପଡ଼ି ଯାଉଥିଲା ।
ଗୋପାଳୁଣୀ ବୋଇଲା ଏ ବ୍ରତ ଯେବେ ସତ    ଅଧଦୂରେ ଦଧିଭଣ୍ଡ ରହିବ ନିଯତ ।
ଏମନ୍ତେ ବୋଲିଣ ଗୋପୀ ବିଚାରିଲା ମନେ    ହୃଦେ ଲାଗି ଦଧିଭଣ୍ଡ ରହିଲାକ ଶୂନ୍ୟେ ।
ନିଶ୍ଚୟେ ବ୍ରତ କରିବି ବିପ୍ରଙ୍କୁ କହିଲା    ଦଧିଭଣ୍ଡ ଧରି ଗୋପୀ ତହୁଁ ଚଳିଗଲା ।

ବ୍ରାହ୍ମଣହିଁ ତହୁଁ ଚଳିଗଲ ନିଜପୁର ସକଳ କହିଲ ନିଜ ପତ୍ନୀର ଆଗର ।
ଯେତେ କଥା ପଥେ ହେଲ କହିଲ ସମସ୍ତ ତଦନ୍ତରେ ଦର୍ଶନ ମୁଁ କଲି ବିଶ୍ୱନାଥ ।
ଯେତେ ଦୁଃଖ ଜଣାଇଲି ପ୍ରଭୁଙ୍କ ଛାମୁର ସେ ବୋଇଲ ସୋମନାଥ ବ୍ରତ ଗୋଟି କର ।
ଦରିଦ୍ର ଅବସ୍ଥାରୁ ତୋ ବାଞ୍ଛା ହେବ ସିଦ୍ଧି ଦେହଅନ୍ତେ କଇଳାସ ଲଭିବୁ ଅବଧି ।
ବ୍ରତ ବିଧିମତ ଯେତେ ବୁଝାଇ କହିଲେ ଯାଅ ବୋଲି ମହାପ୍ରଭୁ ମୋତେ ଆଜ୍ଞାଦେଲେ ।
ତେଣୁ ମହାବ୍ରତ ଗୋଟି କରିବା ଅବଶ୍ୟ ଶୁଣିଲ ପତ୍ନୀ ଯେ ସେହୁ ହେଲ ହସ ହସ ।
ଆନନ୍ଦ ସାଗରେ ପଡ଼ି ପତିକି ବୋଇଲ ଅବଶ୍ୟ କରିବା ବ୍ରତ ଦୁହେଁ ମୁକ ହେଲ ।
ଏମନ୍ତ ବିଗ୍ରର କରୁ କେତେଦିନ ଗଲ ଦିନୁ ଦିନୁ ଧନ ଶିବ ଆଜ୍ଞାରେ ବଢ଼ିଲ ।
ଆଶ୍ୱିନ ଶୁକ୍ଳପକ୍ଷ ଆସି ହୋଇ ପ୍ରବେଶ ନବମୀରେ କଲେ ଏକବାର ଉପବାସ ।
ଦଶମୀ ଦିନ ସେ ସର୍ବ ନିର୍ଭ କରିଥିଲେ ସନ୍ଧ୍ୟା ହେଲ ସୋମନାଥ ବ୍ରତ ଆଚରିଲେ ।
ବିଧିମତ କରି ହର କହିଥିଲେ ଯେତେ ବ୍ରତ ଆଚରିଲେ ସବୁ କରି ସେହିମତେ ।
ଏହିମତି କଲ ବ୍ରତ ଦଶ ସମ୍ବତ୍ସର ଅପ୍ରମିତେ ଧନଜନ ବଢ଼ିଲ ତାହାର ।
କହୁ କହୁ ସମ୍ପତ୍ତି ତା ଅକଳନା ହେଲ ନାନା ଧର୍ମ କୀର୍ତ୍ତିମାନ କରି ଦିନ ନେଲ ।
ଦେହଅନ୍ତେ ଯାଇ କଇଳାସ ପୁରେ ବସି ପ୍ରଥମ ଗଣରେ ଗଣା ହେଲ ଅହର୍ନିଶି ।
ଏ ବ୍ରତର ମହିମା ଯେ ଅଟଇ ଅପାର କହିଲୁ ଅମ୍ବିକା ଭଲେ ମନେ ରଖ ତୋର ।
ଏହାଶୁଣି ପାର୍ବତୀ ଯେ ଅତ୍ୟନ୍ତ ଆନନ୍ଦେ ଅପ୍ରମିତ ପ୍ରଣମିତ କଲେ ହର ପାଦେ ।
ଏ ବ୍ରତ ସମ୍ପୂର୍ଣ୍ଣ ହେଲ ଭଣେ ରାମ ଦାଶ ସେ ହର ଗଉରୀ ପାଦପଦ୍ମେ ମୋର ଆଶ ।
ହେ ପ୍ରଭୁ ଶଙ୍କର ମୋତେ ଏହି ଆଜ୍ଞା ହେଉ କେବଳ ସାଧୁଙ୍କ ସଙ୍ଗେ ଦିନ ମୋର ଯାଉ ।
ସକଳ ଭରସା ମୋର ଶିବ ରାମ ଦୁଇ ସେ ପାଦପଦ୍ମରେ ଏକା ଶରଣ ମାଗଇ ।

ଶ୍ରୀ ମହାଦେବ ଶରଣ
ସୋମନାଥ ବ୍ରତ କଥା ସମାପ୍ତ ।



# ନିବେଦନ

ଏହି ସଂଗ୍ରାହକଙ୍କ ଦ୍ୱାରା ନିମ୍ନଲିଖିତ ଅପ୍ରକାଶିତ ତାଳପତ୍ର ପୋଥି ସଂଗ୍ରହ ଓ ନକଲ ପ୍ରସ୍ତୁତ କରି ପ୍ରକାଶ ଅପେକ୍ଷାରେ । ସୁଧୀବୃନ୍ଦ ଦୟାକରି ପ୍ରକାଶନ ନିମନ୍ତେ ସାହାଯ୍ୟ ଓ ସହଯୋଗ ମୋର ଏକାନ୍ତ କାମ୍ୟ ।

୧ । ବାସୁଦେବ ଦାସ କୃତ—ଶ୍ରୀମଦ୍ ଭଗବଦ୍ ଗୀତା (ରାମାନୁଜ ଭାଷ୍ୟ)

୨ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ବିରଚିତ ସୁଭଦ୍ରା ପରିଣୟ—ଲୋକନାଥ ଦାସ

୩ । କାହ୍ନୁ ଦାସ କୃତ—ଶ୍ରୀରାମ ରସାମୃତ ସିନ୍ଧୁ ରାମାୟଣ

୪ । ଧନକୃଷ୍ଣ ଦାସ କୃତ—ସାମୁଦ୍ରିକ

୫ । କୁଅଁର ବିରଚିତ—କମଳାକାନ୍ତ ଚଉତିଶା

୬ । ଶ୍ରୀଧର ଦାସ ବିରଚିତ—କାଞ୍ଚନଲତା

୭ । ମଧୁସୂଦନ ନନ୍ଦ ବିରଚିତ—ବୈଶାଖ ମାହାତ୍ମ୍ୟ

୮ । ରାଜମାଳା

୯ । ବଲ୍ଲଭନାରାୟଣ ରଚୟିତା—ତୀର୍ଥ ଚିନ୍ତାମଣି

୧୦ । ରାମଦାସ ବିରଚିତ—ହିନାଥ ମେଳା

ବିନୀତ

ସଂଗ୍ରାହକ

ମୁଦ୍ରଣ—ସନ୍ତୋଷ ପ୍ରିଣ୍ଟର୍ସ, ପୁରୁଣା ବ୍ରହ୍ମପୁର, ବ୍ରହ୍ମପୁର-୯